ISBN 81-237-1824-1

1996 (ଶକାବ୍ଦ 1918)

© ସଂପୃକ୍ତ କବିଗଣ, 1996

**Sarasa Gita** ***(Oriya)***

ଟ 7.00

ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ,
ଏ-5, ଗ୍ରୀନ୍ ପାର୍କ, ନୂଆଦିଲ୍ଲୀ-110016 କର୍ତ୍ତୃକ ପ୍ରକାଶିତ ।




Digitized by srujanika@gmail.com

ନେହେରୁ ବାଳ ପୁସ୍ତକାଳୟ

# ସରସ ଗୀତ

ଏକ ସଂକଳନ

ଅଳଙ୍କରଣ
ବଳଦେବ ମହାରଥୀ



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

Digitized by srujanika@gmail.com

# ଫୁଲଚୁଇଁ ଚଢ଼େଇ

ଫୁଲଚୁଇଁ ଚଢ଼େଇ ମୁଁ ଉଡ଼େ ଫୁଲି ଫୁଲିକା
ଫୁଲ ମହୁ ଖାଉଥାଏ ଫୁଲେ ଝୁଲି ଝୁଲିକା ।
ସାଥୀ ମୋର ତମେ ସବୁ ଯେତେ କୁନୁମୁନିଆ
ଫୁଲଚୁଇଁ ଚଢ଼େଇ ମୁଁ ଫୁଲ ମୋର ଦୁନିଆଁ ।

ରାତି ପାହିଗଲା ଯେବେ ଉଇଁ ଆସେ ସୂରୁଯ
ଆକାଶରେ ବୁଣି ଦେଇ ନାଲି ନାଲି ମୁରୁଜ ।
ଗଛ ଡାଳୁ ଥର୍ କିନା ଫୁଲଟିଏ ଝଡ଼େଇ
ଶେଯ ଛାଡ଼ି ଉଠେ ମୁଁ ଯେ ଫୁଲଚୁଇଁ ଚଢ଼େଇ ।



ନାଲି, ନୀଳ, ନେଳି ଫୁଲ ବଗିଚାର ଉହାଡ଼େ
ଡ଼େଣାମେଲି ଉଡିଯାଏ ମନହୁଏ ଯୁଆଡ଼େ ।
ଭୋକ କଲେ ଫୁଲ ମହୁ ଥିରି ଥିରି ଚୁମଇ
ଫୁଲ ଡ଼ାଳେ ଝୁଲି ଖେଳି ମଉଜରେ ଝୁମଇ ।

କୁନି ମୋର ଦେହ ସିନା ସଫା ମୋର ମନଟି
ମନେ ମୋର ସତେ ଅବା ପୁନେଇଁର ଜହ୍ନଟି ।
ମନ ତଳେ ଟିକେ ମୋର ନଥାଏ ତ ବଢ଼େଇ
ହସି ଖେଳି ଉଡ଼େ ମୁଁ ଯେ ଫୁଲଚୁଇଁ ଚଢ଼େଇ ।

ସୁନାମଣି ରାଉତ

Digitized by srujanika@gmail.com



## ଡାକବାଲା

ମାଟିଆ ଖାକି ପୋଷାକ ନାଇ
ସାଇକଲର ଘଣ୍ଟି ବଜାଇ
''ଚିଠି ଆସିଛି ନିଅହେ ଭାଇ''
କରଇ ଯିଏ ହଲ୍ଲା

ଖୁସି ମନରେ ଗାଇ ସେ ଗୀତ
କରଇ ନିତି ଆମରି ହିତ
ସିଏତ ଆମ ସବୁରି ମିତ
ନାଆଁ ତା' ଡ଼ାକବାଲା ।

ବେଳ ଦେଖି ସେ କାମକୁ ଯାଏ
ଘରକୁ ଘର ନିଇତି ଧାଏଁ
ଚିଠି କି ଟଙ୍କା ଯାହାବି ଥାଏ
ଦିଅଇ ସେ ତ ବାଣ୍ଟି

Digitized by srujanika@gmail.com

କାମରେ ସିଏ କରେନି ଢ଼ିଲା
ସାଇକି ସାଇ ମାରଇ ଚ଼ିଲ୍ଲା
ହଜିଲା ଚ଼ିଠି ଖୋଜି ସେ ଦିଏ
ଚିଠି ମୁଣିକୁ ଘାଣ୍ଟି ।

ମାନେନି ସିଏ ବରଷା ଖରା
ଜୀବନ ତା'ର କଷଣ ଭରା
କାମରେ ମାତି ଥାଏ ସେ ପରା
ନଥାଏ ତା'କୁ ଡର

ସଭିଙ୍କୁ ମଣେ ଆପଣା ପରି
ନିଜର କାମ ଯାଏ ସେ କରି
ଓଠରୁ ତା'ର ହସର ଝରି
ଝରଇ ଝର ଝର ।

ସୁନାମଣି ରାଉତ



Digitized by srujanika@gmail.com

# ଫୁଲଟିଏ ଫୁଟିଲା

ବଗିଚାରେ କଢିଟିଏ ଫୁଲ ହୋଇ ଫୁଟିଲା
ମହ ମହ ବାସ ତା'ର ଚଉଦିଗେ ଛୁଟିଲା
        ଗୁଣୁ ଗୁଣୁ ମହୁମାଛି
        ଫୁଲ ସବୁ ବାଛି ବାଛି
ମିଠା ମହୁ ପିଇବାକୁ ଫୁଲପାଶେ ଯୁଟିଲା ।

ସୁଲୁସୁଲୁ ପବନରେ ଦୋହଲାଇ ମଥାଟି
କୁଲୁକୁଲୁ ହସ ହସି ଫୁଲକହେ କଥାଟି—
    "ଆସୁ ବାଆ ଆସୁ ଝଡ଼
    ବରଷା କି ନିଆଁରଡ଼
ଡ଼ରିବିନି କାହାକୁ ମୁଁ ହେବିନାହିଁ ଅଥାଟି



Digitized by srujanika@gmail.com





ସକାଳୁଆ କାକରରେ ଭିଜିଭିଜି ଫୁଲିବି
ଶିରିଶିରି ପବନରେ ଥିରିଥିରି ଝୁଲିବି
ସୂରୁଯଠୁଁ ଖରାଖାଇ
ପବନରେ ଗୀତ ଗାଇ
ଚଉଦିଗେ ବାସଭରି ହସଝାରି ବୁଲିବି।''

ନାଲିନାଲି ସୂରୁଯଟି ପୂରୁବରେ ଉଠିଲା
କଳାରାତି ଅଂଧାର ଯେ ଧୀରେ ଧୀରେ ତୁଟିଲା
ମନସୁଖେ ହସି ହସି
ପାଖୁଡ଼ାରୁ ଖସି ଖସି
ବଗିଚାର କଢ଼ିଟିଏ ଫୁଲ ହୋଇ ଫୁଟିଲା।

ସୁନାମଣି ରାଉତ

Digitized by srujanika@gmail.com

# ନାଆଁଟି ମୋର ଘର

ନାଆଁଟି ମୋର ଘର
ସଭିଙ୍କ ପାଖେ ଆଦର ମୋର
ନାହିଁ ଆପଣା ପର ।

ରାଜାଙ୍କ ପାଶେ ରାଜା ନଅର
ପ୍ରଜାଙ୍କ ପାଖେ କୁଡ଼ିଆ ଘର
ପଶୁଙ୍କ ପାଇଁ ବସା ମୋ ନାମ
ପକ୍ଷୀଙ୍କ ପାଇଁ ନୀଡ଼ ।

ଗରିବ ଧନୀ କିଏ କେମିତି
ମୋ ପାଇଁ ଯିଏ ଭାବେ ଯେମିତି
ସଭିଙ୍କ ପାଇଁ ସମ ଆଦର
ସମ ଭାବନା ମୋର

ରାତିରୁ ଦିନ ଦିନରୁ ରାତି
କୋଳରେ ପାଇ ଫୁଲାଏ ଛାତି
ସଫା ସୁତୁରା ରଖିଲେ ମୋତେ
ଦିଶେ ମୁଁ କି ସୁନ୍ଦର ।

କୁନି ମୁନିଠୁ ପାକୁଆ ଅଜା
ନାଚିକୁଦି ଯେ କରନ୍ତି ମଜା
କାହାକୁ କେବେ କହେନି କିଛି
କରେନି ହତାଦର ।

ହସ ଖୁସିରେ ଚ଼ଳିଲେ ତୁମେ
ହସିବ ଦେଶ ହସିବା ଆମେ
ତୁମ ସୁନାମେ ବଢ଼ିବ ନାମ
ଦେଶ ବିଦେଶେ ମୋର
ନାଆଁଟି ମୋର ଘର ।

ବୀରେନ୍ଦ୍ର ନାଥ ମହାନ୍ତି



Digitized by srujanika@gmail.com

## ବେଙ୍ଗୁଲୀ ନାନୀର ପକଡି ଛଣା

ବେଙ୍ଗୁଲି ନାନୀ ବସିଛି ଚାହିଁ
ବେଙ୍ଗ ନନାର ବାଟ
ବେଙ୍ଗ ନନାଟି ଯାଇଛି ତୋଟା
ଆଣିବ ଜାଳ କାଠ ।
ରଖିଛି ତେଲ ଅଦା ପିଆଜ
ବେସନ ଲଙ୍କା ପାଣି
ବସିଛି ଚାହିଁ ଜାଳ ଆସିଲେ
ପକଡି ଦେବ ଛାଣି ।

ଜାଳକୁ ଧରି ବେଙ୍ଗ ନନାଟି
ଆସିଲା ହଲି ହଲି
ବେଙ୍ଗୁଲୀ ନାନୀ ତରତରରେ
ଲଗାଇ ଦେଲା ଚୂଲି ।
ପୁଅ ପୁତୁରା ନାତି ନାତୁଣୀ
ଭଉଣୀ ଆଉ ଭାଇ
ପକଡି ଛଣା ଦେଖିବା ପାଇଁ
ଆସିଲେ ଧାଇଁ ଧାଇଁ ।



Digitized by srujanika@gmail.com



ତେଲ କଡ଼େଇ ଚୂଲିରେ ରଖି
ବେସନ ଦେଲା ଗୋଳି
ପକଡି ଛଣା ଦେଖିବା ପାଇଁ
ନାଚିଲେ ହଳି ହଳି ।
ବେସନ ପଡି ତେଲ କଡ଼େଇ
ଫୁଟିଲା ଟକ୍ ଟାକ୍
ପକଡି ଦେଖି ସଭିଏଁ ଉଠି
ଡେଇଁଲେ ଖପ୍ ଖାପ୍ ।

ବୀରେନ୍ଦ୍ରନାଥ ମହାନ୍ତି

Digitized by srujanika@gmail.com

## କଣ୍ଢାଚୁଡା ଉଖୁଡା

କଣ୍ଢାଚୁଡା ଉଖୁଡା
ଆଈ ଚମ ଧୁଡୁ ଧୁଡୁ
ଅଜା ଚମ ଧୋକଡା ।
ଅଜା ଧରି ଡାଲାଟେ
ଖାଉଥିଲେ ଚୁଡା ଭୁଜା
କରି ଦେଲେ ହଲ୍ଲାଟେ ।

ଆଈ ବସି ବାଡିରେ
ପାରୁ ଥିଲା ବିରି ବଡି
ଧାଇଁ ଗଲା ଛାଡିରେ
ଆଈ ଯାଇ ଦେଖିଲା
ଗାଆଁ ଦାଣ୍ଡେ ଅଜା ବସି
କାନ୍ଦୁଥିଲେ ଏକଲା ।
ଆଈ ବସି କାନ୍ଦିଲା
ଅଜା ଆଇଙ୍କର କାନ୍ଦ
ଗାଆଁ ସାରା କମ୍ପିଲା ।

ଗାଆଁ ଲୋକେ ଆସିଲେ
ଅଜା ଆଈ କାନ୍ଦ ଦେଖି
ତାଙ୍କ ସାଥେ କାନ୍ଦିଲେ ।
ଗାଆଁ ଦାଣ୍ଡ ଛୋଟିଆ
ଶିକାରକୁ ଯାଉଥିଲେ
ରାଜା ପୁଅ ହଟିଆ ।
ପାତ୍ର ମନ୍ତ୍ରୀ ସାଥିରେ
ରାଜା ପୁଅ ପଚାରିଲେ
କିସ ହେଲା ଏଥିରେ ।



Digitized by srujanika@gmail.com

ଯଦୁ ମଧୁ ଦଳେଇ
ପାରିଲେନି କହି କିଛି
କାବା ହେଲେ ଅନେଇ ।
ଆଇ କହେ ଅଜାଙ୍କୁ
ସତ କଥା କହି ଦିଅ
ଆମ ଦେଶ ରାଜାଙ୍କୁ ।
ଅଜା ଉଠି ଧାଇଁଲେ
ରାଜା ପୁଅ ପାଶେ ଯାଇ
ମନ କଥା କହିଲେ ।

ଚୂଡା ଭୂଜା ଭିତରେ
ଗୋଡ଼ି ଗୋଟେ ରହିଥିଲା
ବାଜିଗଲା ଦାନ୍ତରେ ।
ରାଜା ଶୁଣି ହସିଲେ
ଏଇ କଥା ପାଇଁ କିଆଁ
ଗାଆଁ ଲୋକ କାନ୍ଦିଲେ ।
ଲୋକେ ହେଲେ ଛାନିଆଁ
କିଛି ନାହିଁ ବୋଲି କହି
ହଲ୍ଲା କଲେ ଦୁନିଆଁ ।

ଭଲା କଥା ଭଲାରେ
ନ ବୁଝି ନ ଶୁଣି କେବେ
କର ନାହିଁ ହଲ୍ଲାରେ ।

ବୀରେନ୍ଦ୍ରନାଥ ମହାନ୍ତି



Digitized by srujanika@gmail.com



# ଟିକି ଚଢେଇ

ଟିକି ଚଢ଼େଇ ଟିକି ଚଢ଼େଇ
ପବନ ସାଥେ କରି ଲଢ଼େଇ
ଆକାଶେ ଯାଉ ଉଡି
କେବେ ତ କାଇଁ
ପାରେନା ଛୁଇଁ
ତତେ ମୋ ଟିକି ଗୁଡ଼ି ।

ଟିକି ଚଢ଼େଇ ଟିକି ଚଢ଼େଇ
ଅଳସ ନିତି ଦଉ ଛଡେଇ
ବଡି ସକାଳୁ ରାବି
ଆଖି ମଳି ମୁଁ ନିଦରୁ ଉଠେ
ଦିନ ହେଲାଣି ଭାବି ।

ଟିକି ଚଢ଼େଇ ଟିକି ଚଢ଼େଇ
ମୁନିଆଁ ତୋ'ର ଥଣ୍ଟ ବଢ଼େଇ
ପାଚିଲା ଫଳ ଖାଉ
ଗଛ ମୂଳରେ
ଖୁସିରେ ଆମେ
ତୋ' ଆଡେ ଚାହିଁଥାଉ ।



Digitized by srujanika@gmail.com



ଟିକି ଚଢ଼େଇ ଟିକି ଚଢ଼େଇ
ଉଡିଯାଉ ତୁ ଡେଣା ବାଡେଇ
ଦୂର ରାଇଜେ କେବେ
ଛୁଆ ପାଇଁ ତୋ ଆହାର ଆଣୁ
ଫେରି ଆସୁ ତୁ ଯେବେ ।

ଟିକି ଚଢ଼େଇ ଟିକି ଚଢ଼େଇ
ଟିକିଏ ହେଲେ ନାହିଁ ବଡ଼େଇ
ଉଚ୍ଚରେ ଉଡି ଏତେ
ଗରବ କେବେ କରିବି ନାହିଁ
ବଡ ହେଲେ ବି ଯେତେ ।

ଟିକି ଚଢ଼େଇ ଟିକି ଚଢ଼େଇ
ତୋ ସାଥେ ମତେ ନେ ଉଡେଇ
ନୀଳ ଆକାଶ ପରେ
ମେଘ ସାଥିରେ
ଖୁସିରେ ମୁହିଁ
ଖେଳିବି ଆଜି ଥରେ ।

ବଙ୍କିମ ଚନ୍ଦ୍ର ନାୟକ



Digitized by srujanika@gmail.com

## ମାଙ୍କଡ

ନାଆଁ ତାର ମାଙ୍କଡ
ଖାଏ କଷି କାଙ୍କଡ
ମୁହଁ କଳା ବାନ୍ଦର
ଦିଶେ ନାହିଁ ସୁନ୍ଦର ।

ଚାରିଗୋଡେ ଚାଲଇ
ଡାଳେ ଯେବେ ଝୁଲଇ
ଆଗ ଗୋଡ ଦୁଇଟି
କରେ ହାତ ପାଇଟି ।

ଛୁଆ ଜାକି ପେଟରେ
ଧାଏଁ ଭାରି ଆଣ୍ଟରେ



ଡେଇଁ ଡେଇଁ ଡାଳରେ
ବୁଲେ ତୋଟା ମାଳରେ ।

ବେଳେ ବେଳେ ଆସଇ
ବଗିଚାରେ ପଶଇ
ଭାଙ୍ଗି ଡାଳ ପତର
କରେ ଛିନି ଛତର ।

ହାତ ତାର ବଢ଼େଇ
ଫୁଲ ଫଳ ଛିଡ଼େଇ
ଦେଇ ଟିକେ ପାଟିରେ
ଫିଙ୍ଗିଦିଏ ମାଟିରେ ।

Digitized by srujanika@gmail.com

ଆସିଗଲେ କୁକୁର
ଡରରେ ସେ ଆତୁର
ଚାହିଁ ଚାହିଁ ପଛକୁ
ଧାଇଁ ଯାଏ ଗଛକୁ ।

ଥାଇ ଗଛ ଉପରେ
ଖେଙ୍କି ଉଠେ ରାଗରେ
ନାଆଁ ତାର ମାଙ୍କଡ
ଖାଏ କଷି କାଙ୍କଡ ।

ବଙ୍କିମ ଚନ୍ଦ୍ର ନାୟକ

Digitized by srujanika@gmail.com



# ରେଳଗାଡି

ରେଳଗାଡି ସିଏ ରେଳଗାଡି
ଛୁକ୍ ଛୁକ୍ ଛୁକ୍ ଧୁଆଁ ଛାଡି
ଆଗକୁ ଆଗକୁ ଦଉଡେ
ଦୁଇଗୋଟି ଲୁହା ଧାରଣା ଉପରେ
ବାଟ ତା'ର କେବେ ନହୁଡେ ।

ରେଳଗାଡି ସିଏ ରେଳଗାଡି
ତା ଦେହରେ ଡବା ଧାଡି ଧାଡି
ଲାଗି ଅଛି କେତେ ବାଗରେ
ଆମ ମୁଣ୍ଡ ପରି ଇଞ୍ଜିନ ଗୋଟିଏ
ରହିଚି ତା ସବା ଆଗରେ ।

ରେଳଗାଡି ସିଏ ରେଳଗାଡି
ଡିଜେଲ କୋଇଲା ଦେଲେ ବାଢ଼ି
ପୂରି ଯାଏ ତାର ପେଟରେ
ପାଣି ବହେ ପିଇ ଗରଜନ କରି
ଚାଲିଯାଏ ନିଜ ବାଟରେ ।

Digitized by srujanika@gmail.com



ରେଲଗାଡି ସିଏ ରେଲଗାଡି
ଧାଇଁବାର ମଜା ଆପେ ଛାଡି
　　ଷ୍ଟେସନରେ ସେ ଅଟକେ
କେତେ ଯେ କାହାକୁ କୋଳରେ ପୂରାଇ
　　ଧାଏଁ ବିଜୁଳିର ଛଟକେ ।

ରେଲଗାଡି ସିଏ ରେଲଗାଡି
ଗାଆଁ ଗଣ୍ଡା କେତେ ପଛେ ଛାଡି
　　ଧାଏଁ ବିଲ ବଣ ଭିତରେ
ଅଟକି ଯାଏନି ବରଷା ଝଡ଼ରେ
　　କୁହୁଡି ବା ଖରା ଶୀତରେ ।

ରେଲଗାଡି ସିଏ ରେଲଗାଡି
କେତେ କାହା ପରେ ଯାଏ ମାଡି
　　ପଡିଗଲେ ତାର ଆଗରେ
ଗାଡି ଘୋଡା ହେଉ ମଣିଷ ବି ହେଉ
　　ହେଉ ଅବା ସିଂହ ବାଘରେ ।

ବଙ୍କିମ ଚନ୍ଦ୍ର ନାୟକ



Digitized by srujanika@gmail.com

# ବିଲୁଆ ନନାର ବାହାଘର

ତୁରୀ ବାଜେ ପେଁ ପେଁ
କାହାଳୀଟା ଚେଁ ଚେଁ
ସାଇପଡ଼ିଶା ସାଙ୍ଗସାଥିଏ
ହସନ୍ତି କିଆଁ ହେଁ ହେଁ ?

କଥା ସାଙ୍ଗକୁ ଟିକିଏ ନଥା
ଏତେ କଥାକୁ ନଥିଲା ମଥା
ବିଲୁଆ ନନାର ବାହାଘର
ସେଥିଲାଗି ଏତେ ତରବର ।

ଖନ୍ଦା ଶାଳରେ ଆରିସା, ପୁରି
ଡାକ ଦିଅନ୍ତି ସେଁ ସେଁ
ସାଇ ପଡ଼ିଶା ସାଙ୍ଗସାଥିଏ
ହସନ୍ତି କିଆଁ ହେଁ ହେଁ ?

Digitized by srujanika@gmail.com



ବାଣ ଫୁଟୁଛି ଢୋ' ଢୋ
ଘରଟା ଶୁଭେ ଘୋ' ଘୋ'
ବିଲୁଆ ନନା ସ୍ନେହ ମନ୍ତର
ତୋଷିବ ସଦା ଆମ ଅନ୍ତର ।

ଢୋଲିଆ ସାଥେ ତାଳ ପକାଇ
ମହୁରୀ ବାଜେ ପେଁ ପେଁ
ସାଇ ପଡିଶା ସାଙ୍ଗସାଥିଏ
ହସନ୍ତି କିଆଁ ହେଁ ହେଁ ?

ମାନସ ରଂଜନ ସାମଲ

Digitized by srujanika@gmail.com





## ଫାଲୁଆ

ଆମରି ଗାଆଁର ଫାଲୁଆ
ଖାଇ ଦେଲା ଥଣ୍ଡା ହାଲୁଆ
ଧରି ନେଲା ତା'କୁ ଗାଲୁଆ
ଗୋଡ଼ ମାରିଗଲା କାଲୁଆ ।

ବିଛଣା ଧରିଲା ଫାଲୁଆ
ବାପା ଯାଇଥିଲେ ବାଲିଆ
ଆଣିଲେ ଓଷଧ ନାଲିଆ
ଫାଲୁଆ,
ଖାଇବ କି ଆଉ ହାଲୁଆ ?

ମାନସ ରଂଜନ ସାମଲ



Digitized by srujanika@gmail.com

